# ଆମେ ଏ ଦେଶର ସିଂହ ଶାବକ



। ଭଗବାନ ମହାପାତ୍ର ।

# ଆମେ ଏ ଦେଶର ସିଂହ ଶାବକ

(ଶିଶୁ କିଶୋରଧର୍ମୀ କବିତା ସଂକଳନ)

ଭଗବାନ ମହାପାତ୍ର



# ଆମେ ଏ ଦେଶର ସିଂହ ଶାବକ

(ଶିଶୁ କିଶୋରଧର୍ମୀ କବିତା ସଂକଳନ)


କବି
ଭଗବାନ ମହାପାତ୍ର

ପ୍ରକାଶକ
କ୍ରାନ୍ତି ପବ୍ଲିକେଶନସ୍
ଏଫ୍ - ୭, ପାରାଦୀପ ପୋର୍ଟ
ଜି: ଜଗତସିଂହପୁର
ପିନ୍-୭୫୪୧୪୨

ପ୍ରଚ୍ଛଦ
ବଳଦେବ ମହାରଥୀ

ମୁଦ୍ରଣ
କଲ୍ୟାଣୀ
ଭୁବନେଶ୍ୱର-୧୪

ପ୍ରଥମ ସଂସ୍କରଣ
ଅଗଷ୍ଟ-୨୦୦୭

ମୂଲ୍ୟ - ୨୫/-


**AAME A DESHARA SINGHA SABAKA**

(An Anthology of poems for children)


**Poet**
BHAGABAN MOHAPATRA

**Publisher**
KRANTI PUBLICATIONS
F - 7, Paradip Port, Dist-Jagatsinghpur
Pin-754142

**Art**
Baladev Moharatha

**Printed at**
Kalyani, BBSR-14

**First Edition**
August - 2007

**Price: Rs. 25/-**

# ଏକ କ୍ଷୁଦ୍ର ପ୍ରୟାସ

ଶିଶୁ ଓ କିଶୋରମାନଙ୍କ ପାଇଁ ସାହିତ୍ୟ ସର୍ଜନା କରିବା ବୟସ୍କମାନଙ୍କ ସାହିତ୍ୟ ଠାରୁ ନିଶ୍ଚୟ ଅଧିକ ପ୍ରୟୋଜନ । ସରଳ, ନିଷ୍ପାପ ଶିଶୁର ମନ ଉପରେ ଆଜିର ଇଲେକ୍‌ଟ୍ରୋନିକ୍ ମିଡ଼ିଆର ପ୍ରଭାବ ଯଥେଷ୍ଟ ବୃଦ୍ଧିପାଇବାରେ ଲାଗିଛି । ଏହାର ଶିକ୍ଷଣୀୟ ଦିଗଗୁଡ଼ିକୁ ବାଦ୍ ଦେଲେ ପ୍ରତିକୂଳ ଦିଗଗୁଡ଼ିକ ଆଗାମୀ ପିଢ଼ିର ବଂଶଧରମାନଙ୍କୁ ଯେ ଗୋଟିଏ ଦିଗହୀନ ଭବିଷ୍ୟତ ଆଡ଼କୁ ନେଇଯାଉଛି, ଏଥିରେ ସନ୍ଦେହ ନାହିଁ । ଆଜିର ମୁଦ୍ରଣ ସାହିତ୍ୟ ଚପଳମତି ଶିଶୁମାନଙ୍କ ମନକୁ ବାନ୍ଧି ରଖିବା ପାଇଁ ଯଥେଷ୍ଟ ସହାୟକ ହେଉନାହିଁ । ଶିଶୁ ମନରେ ଆମର ମାଟି, ପାଣି, ପରିବେଶ, ଦେଶ ଓ ଆମର ପ୍ରିୟ ପୃଥିବୀ ପ୍ରତି ମମତା, ପ୍ରତିବଦ୍ଧତା ଅଙ୍କୁରିତ କରିବା ପାଇଁ ସୃଷ୍ଟି ହେଉଥିବା ସାହିତ୍ୟ ପର୍ଯ୍ୟାପ୍ତ ନୁହେଁ । ଆମ ସମାଜକୁ ନିଜର ଶ୍ରମଦେଇ ପ୍ରତିନିୟତ ପୁଷ୍କଳ କରୁଥିବା ମଣିଷ ପ୍ରତି ଶ୍ରଦ୍ଧା ଉଦ୍ରେକ କରିବା ପାଇଁ ମଧ୍ୟ ଆମେ ବେଶି କିଛି ଏ ଧରଣ ସାହିତ୍ୟ ସୃଷ୍ଟି କରିପାରିନେ । ଯାହା କିଛି ସର୍ଜନା ହେଉଛି, ଶିଶୁ କିଶୋରମାନଙ୍କ ଚପଳ ମନକୁ ବିଶେଷ ଭାବେ ଆକୃଷ୍ଟ କରିପାରୁନି । ସେମାନଙ୍କ ପାଇଁ କିଛି ବିଜ୍ଞାନ ସମ୍ମତ ରୁଚିପୂର୍ଣ୍ଣ ଅଥଚ ଗଠନମୂଳକ ସାହିତ୍ୟ ସର୍ଜନା କରିବା ଆଜି ଯେପରି ଜରୁରୀ ହୋଇପଡ଼ିଛି । ଏଇ ମାନସିକତା ମୋତେ ସମୟେ ସମୟେ ଆଚ୍ଛନ୍ନ କଲେ ମଧ୍ୟ ସେ ଦିଗରେ ବିଶେଷ କିଛି ସୃଷ୍ଟି କରିବା ମୋ ଦ୍ୱାରା ସମ୍ଭବ ହୋଇନି । ଯେତେବେଳେ ଗୋଟେ ଅଧେ ଏହି ଶ୍ରେଣୀୟ କବିତା ମୋ କଲମରୁ ନିଃସରି ଆସିଛି, ତାକୁ ସାଇତି ରଖିଚି । ସେ ସବୁକୁ ଏକାଠି କରିଛି, ଏହି ସଂକଳନରେ । ମୋର ବିଶ୍ୱାସ, ମୋର ଏଇ କ୍ଷୁଦ୍ର ପ୍ରୟାସ ଏଇ ମାଟିର ମୋର ପ୍ରିୟ ଦର ବିକଶିତ କିଶୋର କଳିକାମାନଙ୍କୁ କିଛି ପରିମାଣରେ ଉଦ୍‌ଭାସିତ କରିବ ।

**ଭଗବାନ ମହାପାତ୍ର**

# ସୂଚୀପତ୍ର





# ଆମେ ଏ ଦେଶର ସିଂହ ଶାବକ



ଆମେ ଏ ଦେଶର ସିଂହ ଶାବକ
ଶକତିର ସଂକେତ
ନବ ପ୍ରଭାତର ଉଦୟ ଅରୁଣ
ଗାଉ ମୁକ୍ତିର ଗୀତ ।

ଦୁର୍ବାର ଆମ ଯାତ୍ରାର ପଥ
କ୍ଷିପ୍ର ଆମର ଗତି
ମାନିବାନି ଆମେ ବାଧା ବନ୍ଧନ
ଦୁଃସହ ଅମା ରାତି ।

ସାଗର ଊର୍ମି ସମାନ ଉଠିବୁ
ଉତ୍‌ଥଳ କଳରୋଳ
ଭାସମାନ ଆମ ଜୀବନ ନଉକା
ବେଗଗାମୀ ଚଞ୍ଚଳ ।



ଅସୁର ପରିକା ଶକ୍ତି ଆମର
ହୃଦୟରେ ଦେବ ଗୁଣ
ମଣିଷର ସେବା ଆଦରି ନେବାକୁ
କରିବୁ ଜୀବନେ ପଣ ।

ଭାଙ୍ଗିବୁ ଆମେ ଶୋଷଣ ସଉଧ
କଷଣର କାରାଗାର
ସତ୍ୟ ଆମର ସାଧନ ମନ୍ତ୍ର
ଲଢ଼େଇର ହତିଆର ।



ମାନବିକତାର ଜୈତ୍ର ଉଡ଼ାଇ
ଚାଲିବୁ ଆଗକୁ ମାଡ଼ି
ଅରାତିର ଛାତି କରିବୁ ବିଦ୍ଧ
ଦେଇ ଆମେ ଭୀମ ରଡ଼ି ।



ଜନ୍ମ ମାଟିର ରଖିବାକୁ ଟେକ
ରକ୍ତ ଦେବୁରେ ଢାଳି
ଆଗାମୀ କାଲିର ଯାତ୍ରୀ ଆମେରେ
ଅନ୍ଧାର ଦେବୁ ଜାଳି ।

ଉଷାର ଆଲୋକ ବୁଣିଦେବୁ ଆମେ
ସବୁଜ ଶସ୍ୟ କ୍ଷେତ
ଗାଇବୁରେ ଆମେ କଣ୍ଠ ଫଟାଇ
ସାମ୍ୟ ମୈତ୍ରୀ ଗୀତ ।



# ଜନନୀ ଜନ୍ମଭୂମି



ଜନନୀ ଜନମଭୂମି
ମମତାର ଡ଼ୋରି
କହ କିଏ ଭୁଲିପାରେ
ଅବା ଦେହଧରି ।

ରକତ ନିଗାଡ଼ି ଯିଏ
ଖୁଆଇଲା କ୍ଷୀର
ସ୍ନେହ ବୋଲା କଥା
ଯା'ର ଅମୃତର ଧାର

ଓଠେ ଯିଏ ଭରିଦେଲା
କଥାର ଦରୋଟି
ଭୂଇଁତଳୁ ନେଲା ଯିଏ
କୋଳକୁ ସାଉଁଟି ।



ହୃଦୟରେ ଆଙ୍କିଦେଲା
ଶରଧାର ଗାର
ସେଇତ ମମତାମୟୀ
ଜନନୀ ଆମର ।

ବଡ଼ ହେଲେ ରଖିବି ମୁଁ
ମୋ ମା'ର ଟେକ
କୋଟି କୋଟି ମାଆ ପ୍ରାଣୁ
ଘୁଞ୍ଚାଇବି ଦୁଃଖ ।
କିଏ ସେ ପାଏନି ଆଜି
ପିନ୍ଧିବାକୁ ବାସ
କିଏ ଅବା ଦିନ କାଟେ
ରହି ଉପବାସ ।

କାହାର ଆଖିରୁ ଜମା
ଶୁଖେ ନାହିଁ ଲୁହ
କିଏ ଧରି ପାରେନାହିଁ
ହୃଦୟର କୋହ ।

ଧିକ ଏ ଜୀବନ ଯେବେ
କୋଟି ମାଆ ମୁଖେ
ଫୁଟାଇ ନପାରୁ ହସ
ଏ ଜୀବନ ଶେଷେ ।

ତେଣୁ ଆଜି ଜୀବନରେ
ଏହି ଆମ ପଣ
ଘୁଞ୍ଚାଇବୁ ଜନନୀର
ଯେତେକ କଷଣ ।



# ଉଠରେ ଉଠ

ରାତି ପାହିଲା ସକାଳ ହେଲା
ଘର ଚଟିଆ ଭାଇ
ଖିଡ଼ିକି ପାଶେ ଗଳାଇ ମୁହଁ
ଡାକଇ ଚିଇଁ ଚିଇଁ ।



ଉଠରେ ଚିନୁ ଉଠରେ ମିନୁ
ଉଠରେ ପାପୁ ଉଠ
ସୂରୁଯ ପରା ଉଇଁବେ ଏବେ
ନକର ଆଉ ମଠ ।



ବଗିଚ୍ଚ ସାରା ଫୁଲଙ୍କ ମେଳ
ବହେ ଶୀତଳ ବାଆ
ପୂରୁବ ଦିଗ ଦିଶଇ ନାଲି
କେଡ଼େ ସୁନ୍ଦର ଆହା ।

କଉତୁକିଆ ପରଜାପତି
କୁନି କୁନି ଡେଣାରେ
ଫୁଲରୁ ଫୁଲେ ଉଡ଼ି ବୁଲନ୍ତି
ମନର ସରାଗରେ ।

ତୋଟା ଗହଳୁ ଖିଚିରି ମିଚି
ଶବଦ ଆସେ ଭାସି
ଦଳକୁ ଦଳ ବିହଗ କୂଳ
ନଭେ ଯାଆନ୍ତି ଭାସି ।

ହଳିଆ ଭାଇ ବିଲକୁ ଯାଏ
ହଳ ବଳଦ ଯୋଚି
ଉଦାସ ସୁରେ ଗାଆଇ ଗୀତ
ମନକୁ ମନ ରଚି ।

ଜୀବନ ଦେଖ ଚଳ ଚଞ୍ଚଳ
ଗହଳି ସବୁଠାରେ
ଉଠରେ ପିଲେ ଅଳସ ତେଜି
ଲାଗିଯାଅ କାମରେ ।



# ଚାଲ ଯିବା ପାରାଦୀପ ବନ୍ଦର

ଚାଲରେ ପିଲେ ଯିବାରେ ବୁଲି
ପାରାଦୀପ ବନ୍ଦର
ଲାଗିବ ମଜା ଦେଖିବା ଆମେ
ବୋଇତଙ୍କର ଘର ।



ଦେଖିବା ଆମେ ପ୍ରବେଶ ପଥେ
ବିଜୁ ଅଜାଙ୍କ ମୂର୍ତ୍ତି
ହାତ ବଢ଼ାଇ ଦେଖାଉଛନ୍ତି
ତାଙ୍କରି ଗଢ଼ା କୀର୍ତ୍ତି ।

ଦେଖିବା କେତେ ସୁନ୍ଦର ଦିଶେ
ବନ୍ଦର ରାଜପଥ
କି ମନୋହର ଲାଗିଚି ଗଛ
ଯିବା ଆସିବା ପଥ ।

ଫଳ ବଗିଚା ଫୁଲ ବଗିଚା
ଯୁଆଡ଼େ ଚାହିଁ ଦେଖ
ସ୍ମୃତି ଉଦ୍ୟାନ ହରଇ ମନ
ଫେରିବ ନାହିଁ ମୁଖ ।



ତା'ରି ପାଖେ ଯାଇଛି ବହି
ଅଙ୍କା ବଙ୍କା ନଈ
କୁନି ନଉକା ଭାସଇ କେତେ
ଯିବାରେ ଆମେ ବାହି ।

ଦରିଆ କୂଳ ଲହଡ଼ି ମାଳ
ଖେଳଇ ଲୁଚକାଳି
ଶାମୁକା ଶଙ୍ଖ ଗୋଟେଇ ଆଣି
ଭରିବା ଆମ ଥଳି ।

କେଡ଼େ ସୁନ୍ଦର କୁଟୀର ସେଠି
ବସିବା ପାଇଁ ଥାନ
ଦେଖିବା ବସି ଭାସଇ ଦୂରେ
କେତେ ବୋଇତ ମାନ ।



ଦେଖିବା ବୁଲି କିଛି ଦୂରରେ
ମାଛଧରା ବନ୍ଦର
କେତେ ନଉକା ଟ୍ରଲର ସେଠି
ହୋଇଛି ଭରପୂର ।

ଭଳିକି ଭଳି    ମାଛ ସଉଦା
ହୁଅଇ କାରବାର
ଦେଶ ବିଦେଶେ    ବଣିଜ ହୁଏ
ପ୍ରଚୁର ରୋଜଗାର ।

ଦେଖିବା ଗୋଟେ    ବଢ଼ିଆ ଛବି
ଯେଉଁଠି ମହାନଦୀ
ମିଶି ଯାଇଚି    ସାଗର ସାଥେ
ଲହଡ଼ି ମାଳା ଭେଦି ।

ସୂରୁଯ ଉଏଁ    ସକାଳ ହେଲେ
ଦିଶେ କି ମନୋହର
ଝାଉଁ ବଣର    ସଙ୍ଗୀତ ଅବା
ତୋଳଇ ମିଠା ସୁର ।

ଆମ ଅତୀତ    ଗରବ ଗାଥା
ଗାଆଇ ପାରାଦୀପ
ସାରା ଓଡ଼ିଶା    ମୂଲକେ ଯିଏ
ଜଳାଏ ଗୋଟେ ଦୀପ ।



# ଦୁଲେଇ ନାନୀ



ଏଡ଼ିକି ଫୁଲେଇ
ଦୁଲେଇ ନାନୀ
କନିଆ ଦେଖିବା ଦିନଠାରୁ ତୁହି
ମନମାରି କାହିଁ ରହିଚୁ ତୁନି !

ତୋ କଥା କାହାକୁ
ଅଛପା ଅଛି
ଇରିଆଡ଼େ ବାଜା, ବାଣର ରୋଷଣି
ତୋ' ମୁହଁ ତେଣୁ ଫିକା ପଡ଼ିଚି !



ବାହା ବଜାରରେ
ବରଙ୍କର ପରା ବଢ଼ିଚି ଭାଉ
ଯା'; ଘରେ ନାହିଁ ଟଙ୍କାର ମୁଣି
ତା' ଝୁଅ ହେବ ପାଚିଲା ଲାଉ ।

ଭଲାରେ ଭଲା
କି ବେଳ ହେଲା
ମଣିଷର ମୂଲ ଟଙ୍କାରେ ହେଲା
ମଣିଷ ପଣିଆ ଚୁଲୀକି ଗଲା !



ବାହା ବଜାରରେ
ବରଙ୍କର ଭାଉ ଅମୂଲ ମୂଲ
ଚକିରିଆ ବର ଖୋଜଇ ସ୍କୁଟର
ରଙ୍ଗୀନ ଟି.ଭି, ରେଫ୍ରିଜ୍‌ରେଟର ।



ଦୁଲେଇର ବାପା
ଏ କଥା ଶୁଣି ମୋଡ଼ିଲେ ମୁହଁ
ଏତେ ଟଙ୍କା କାହୁଁ କରିବେ ଯୋଗାଡ଼
ଦୁଲେଇ ବୋଉର ଉଠଇ କୋହ ।



ଦି' ଦିନ ହେଲା
ଚୁଲୀ ଅଜଳା
ଏ ବରଷ ଯେତେ ବାହା ତିଥି ଥିଲା
ସବୁ ସରିଲା ।



# ମାଆ ପରି କିଏ ଅଛି

ମା' ପରି କିଏ ଅଛି ଆପଣାର
କିଏ ସେ ପାରିବ କହି
ମା' ଡାକଠାରୁ ଜଗତରେ ଆଉ
ମିଠା ବୋଲି କିଛି ନାହିଁ ।



ମା' ଡାକିଦେଲେ ଝରିପଡ଼େ ଆହା
ପ୍ରୀତିର ଅମୀୟ ଧାରା
ମା' ପରି କେହି ମିଳିବକି କାହିଁ
ଖୋଜିଲେ ଜଗତ ସାରା ।
ସାହାରା ବାଲିରେ ନିଦାଘ କାଳରେ
ବରଷାର ଧାରା ସମ
ମା'ର ମମତା କେଡ଼େ ସୁଶୀତଳ
ଜୀବନ କରେ ମହାନ ।

ମା'ର ସେନେହ ଫୁଲର ସୁରଭି
ପରି ମହ ମହ ବାସେ
ମା'ର ଆଶିଷେ ଜୀବନଟା ସିନା
ସୂରୁଯ ପରିକା ହସେ ।

ମା' ଆଉ ମାଟି ଜଗତଯାକରେ

ଅଟେ ସବୁଠାରୁ ସାର

ମା' ପାଦଧୂଳି ମଥାପରେ ବୋଳି

ହେବା କାମେ ଆଗଭର ।



ମା' ପରି ଯଦି ମହତ ପଣରେ

ସମ କେହି ହୋଇଥାଏ

ସେହି ପରା ଅଟେ ମୋ ଜନମ ମାଟି

ଯା' ପାଶେ ମୋ ମଥା ନୁଏଁ ।

ମା' ଆଉ ମାଟି କେହି କାହାଠାରୁ

ନୁହଁନ୍ତି ବଡ଼ ବା ସାନ

ତାଙ୍କରି ମହତ ରଖିବା ପାଇଁକି

ଗଢ଼ା ସିନା ଏ ଜୀବନ ।



# ଏଇ ଆମ ଧରା

ଶାନ୍ତ ବନାନୀ ଗିରି କନ୍ଦର
କେତେ ମନଲୋଭା ଛବି
ପାହାଡ଼ ଶିଖରୁ ଉଠି ଆସୁଥିବା
ଉଷାର ଅରୁଣ ରବି ।



ମୁକ୍ତ ଶୀତଳ ଝରଣାର ଜଳ
ଝିରି ଝିରି ଆସେ ବହି
ଜୀବନର ଗୀତି ମଧୁର ନିନାଦେ
କଳ କଳ ଛନ୍ଦେ ଗାଇ ।

ଯେତେ ଯେତେ ପକ୍ଷୀ ସେତେ କଳରୋଳ
ସେତେ ସୁମଧୁର ଗାନ
ଗହଳ ଶାଖାରୁ ଭାସି ଆସୁଥିବା
କୋଇଲିର କୁହୁତାନ ।

ଯୁଥ ଯୁଥ ମୃଗ ବରାହ ଶମ୍ବର
ଗଣ୍ଡା, ଗୟଳ କେତେ
ପଲ ପଲ ହସ୍ତୀ ଦଳ ଦଳ କପି
ଭଲ୍ଲୁକ, ବ୍ୟାଘ୍ର ଯେତେ ।

ସାରା ବଣ ଭୂଇଁ          ତାଙ୍କ ଚରା ଭୂଇଁ

ସେ ତାଙ୍କ ସ୍ୱର୍ଗପୁରୀ

ଭୟ ଅବସାଦେ          ହର୍ଷ ଉଲ୍ଲାସେ

ଜୀବନଟା ଉଠେ ପୂରି ।



କେତେ ରଙ୍ଗର          ଫୁଟିଅଛି ଫୁଲ

ଚହଟାଇ ଦେଇ ବାସ

ଫୁଲରେ ଫୁଲରେ          ବନେ ଉପବନେ

ଶାନ୍ତ କୋମଳ ହାସ ।

କେତେ ବର୍ଣ୍ଣରେ          କେତେ ସରାଗରେ

ପ୍ରକୃତି ମା' ଆମ

ସଜାଇ ଦେଇଚି          ଶୋଭାର ପସରା

ସୁନ୍ଦର ଅନୁପମ ।



କେତେ ସୁଶୀତଳ          ମଳୟ ଅନିଳ

ଅମୃତ ଆଣେ ବୋହି

ଗଛରେ ଶାଖାରେ          ଫୁଲରେ ଫଗୁଣେ

ପ୍ରୀତିର ପରଶ ଦେଇ ।

ବର୍ଷାର ବାରି ଦେଉଛି ପରଶି
ନିର୍ଭୟେ ବାରିଧର
ଧୂସର ମାଟିରେ ଜୀବନ ବଂଶୀ
ଲହରାଇ ବାରବାର ।

କଅଁଳି ଉଠଇ ମାଟିର ଧରଣୀ
ନିରସ ଶୁଷ୍କ ପ୍ରାଣ
ସୁନାର ଫସଲ ସଞ୍ଚରି ଯାଏ
ସବୁ କୋଣ, ଅନୁକୋଣ ।



କେଡ଼େ ସୁନ୍ଦର ମାଟିର ଏ ଧରା
ଗିରି, ନଦ, ନଦୀ, ବନ
ସାଗର, ସୈକତ ନିର୍ଝର, ନୀର
ଶ୍ୟାମଳ କେଦାର ମାନ ।

କେତେ ଜୀବଜନ୍ତୁ ଜନମି ଅଛନ୍ତି
ଏଇ ମାଟି ମା' କୋଳେ
ମଣିଷ ତାହାର ଶ୍ରେଷ୍ଠ ବିଭବ
ବୁଝେ ନାହିଁକି ସେ ହେଲେ ।

ବୁଝେନି କି ସିଏ ଏ ସୁନ୍ଦର ଧରା
ତା'ରି ଜୀବନ ନାଟି
ଏ ସାରା ପ୍ରକୃତି କେଡ଼େ ମନୋରମ
ତା ଦେହର ପରିପାଟୀ ।

ତାକୁ ଏ ମଣିଷ ନିଷ୍ଠୁର ପଣେ
କରେ କିଆଁ କଦାକାର
କି ଲାଭ ପାଇବ ମା'ର ଦେହରେ
କଲେ କୁଠାର ପ୍ରହାର ।

କି ଲାଭ ପାଇବ ନିଜ ଘରେ ଯେବେ
ଲଗାଇବ ନିଜେ ନିଆଁ
କି ଯଶ ଲଭିବ ମା'ର ଚିବୁକେ
ଗେଞ୍ଜିବ ଯେବେ ଚିଆଁ ।

କରିବାକୁ ଯେବେ ନିଜର ଜୀବନ
ସୁନ୍ଦର ହସ ହସ
ପ୍ରକୃତି ମା' ଦେହ ଓ ମନରେ
ମଣିଷ ନଦେଉ କ୍ଲେଶ ।

ତା' ଗିରି ଝରଣା ବନ ଉପବନ
ସିକତା, ସାଗର, ବେଳା
ତା' ନୀଳ ଅମ୍ବର ବିହଗ ସକଳ
ଜୀବ ଜଗତର ଲୀଳା ।

ନ କରୁ ଦୂଷିତ ଧ୍ୱଂସ, ବିକୃତ
ଏ ମୁଢ଼ ମଣିଷ ଛାର
ଏଇ ଆମ ଧରା ଶୋଭାର ପସରା
ମଧୁମୟ ମନୋହର ।



# ବଟ ଗୋସେଇଁ

ଆମ ଗାଁ ମୁଣ୍ଡେ ଥିଲେ
ଉଭା ବଟ ଗୋସେଇଁ
ଝଙ୍କା ବରଗଛ ତଳ
କେଡ଼େ ଶୋଭା ଦିଶଇ ।



ବରଡାଳ ମେଲିଥିଲା
ଚଉଦିଗ ଆବୋରି
ଗହଳିଆ ପତ୍ର ସବୁ
ଥିଲେ ତାକୁ ଆଦରି ।

ଋଷିଙ୍କର ଜଟା ପରି
ଲମ୍ବିଥିଲା ଓହଳ
ଲାଗିଥିଲା ପିଲାଙ୍କର
ସଦାବେଳେ ଗହଳ ।

ଆମ ଗାଁ ବିଦ୍ୟାଳୟ
ଗଢ଼ିଉଠେ ସେଇଠି
ଖେଳ ବେଳେ ପିଲେ ସେଠି
ହୋଇଥାନ୍ତି ଏକାଠି ।

ବର ଓହଳକୁ ଧରି

ଝୁଲୁଥାନ୍ତି ଅନେକ

ଡାଳି ମାଙ୍କୁଡ଼ି ଖେଳରେ

ମାତିଥାନ୍ତି କେତେକ ।



ବାଟି ଖେଳ, ବୋହୂଚୋରି

ଠିଆ ପୁଚି ନାରଙ୍ଗ

ଧୂଳି ଘର, ଖେଳକୁଦ

ଗୋଡ଼ ଦି'ଟା ସାରଙ୍ଗ ।

ବଣଭୋଜି, ହରିହାଟ

ଗାଁ ସଭା ଜନ୍ତାଳ

ରଜ ପରବରେ ଭିଡ଼

ହୁଏ ସେଠି ପ୍ରବଳ ।



ଦୋଳି ଖେଳ, ପଶାପାଲି

ଦାଣ୍ଡିଆ ଓ ବାଗୁଡ଼ି

କେତେ ହସ, କେତେ ରସ

କି'ଏ ଉଡ଼ାଏ ଗୁଡ଼ି ।

ସବୁଠାରୁ ବଡ଼ ଗଛ
ଗାଁ ବଟ ଗୋସେଇଁ
ତା' ଶୀତଳ ଛାଇ ତଳେ
ଅତୀତଟା ନାଚଇ ।



ବିତିଥିଲା ସେଠି ଆମ
ମଧୁମୟ ଅତୀତ
ରାବୁଥିଲେ କେତେ ପକ୍ଷୀ
କାଉ, ବଣି, କପୋତ ।



ଖରା ଆଉ ବରଷାରେ
ଗାଈ ଗୋରୁ, ବାଟୋଇ
ଦେଇଥାନ୍ତି ଆଶ୍ରା ତାଙ୍କୁ
ଆମ ବଟ ଗୋସେଇଁ ।

କାହୁଁ ଅଇଲା ଦୁର୍ବୁଦ୍ଧି
କଟା ହେଲା ଓହଳ
କଟାହେଲା ଡାଳ ମୂଳ
ଲାଗିଗଲା ଚହଳ ।

ଲୁଚିଗଲେ ବିସ୍ମୃତିରେ
ଗାଁ ବଟ ଗୋସେଇଁ
ଗାଁ ଦିଶେ ଶିରିହୀନ
ମହାକାଳ ହସଇ ।

ପିଲାଙ୍କର ଖେଳ କୁଦ
ଅବା ରଜ ପରବ
ଯାହା କିଛି ମଧୁମୟ
ସୁଖ ଆଉ ବିଷାଦ ।

ସ୍ମୃତି ବିଜଡ଼ିତ ସେଇ
ତରୁ ଛାୟା ବିତାନ
ମମତା ସେନେହେ ସେ ଯେ
ଥିଲେ କେଡ଼େ ମହାନ ।



ସେ କି ଥିଲେ ଆମା ଗାଁ
କୁଳ ବୃଦ୍ଧ ବଶିଷ୍ଠ
ଯାହା ପାଇଁ ମିଳୁଥିଲା
ବିଦ୍ୟା, ବୁଦ୍ଧି, ଆଶିଷ ।

ଅଛି ଆଜି ସେଇ ଗାଁ
ନାହିଁ ବଟ ଗୋସେଇଁ
ନାହିଁ ସେନେହ ସୋହାଗ
ରାହୁ ଘୋଟି ଆସଇ ।

ଆଜି ଯଦି ସେଇ ସ୍ମୃତି
ଭାସି ଉଠେ ମନରେ
ବେଦନାରେ ଅନ୍ତର ମୋ
ଫାଟି ପଡ଼େ କୋହରେ ।



# ଗଛ ଆମ ଭାଇ ବନ୍ଧୁ

ଗଛ ଆମ ଭାଇ ବନ୍ଧୁ
କୁଟୁମ୍ବ ସମାନ
ତା' ବିନୁ ପାରେନି ବଞ୍ଚି
ମଣିଷ ଜୀବନ ।



ଜୀବଜନ୍ତୁ ପଶୁ ପକ୍ଷୀ
ସବୁରି ସେ ଘର
ସବୁରି ମୁହଁରେ ସେ ତ
ଭରିଚି ଅଧାର ।

ସୁଆଦିଆ ଫଳ ସବୁ
ଡାଳରେ ଶାଖାରେ
ଝୁଲୁଥାଏ ଆମ ପାଇଁ
କେଡ଼େ ସରାଗରେ ।



ହସିଦେଲେ ମେଲିଯାଏ
ଫୁଲର ପସରା
ନାହିଁ ତା'ର ମୂଲ ସେ ଯେ
ସରଗର ତାରା ।

ସବୁଜ ପତରେ ରଚି
ସରଗର ଛବି
ମୋହିନିଏ ମୁନି ମନ,
ଏ ମାଟିର କବି ।

ଅଛିକି ଏ ଧରଣୀରେ
ଏତେ ସୁକୋମଳ
ତରୁ ଛାୟାପରି କୁହ
ଶାନ୍ତ ସୁଶୀତଳ ।



ଗଛଟିଏ ଲେଖାଁ ଆସ
ଆମେ ଲଗାଇବା
ପାଣିଦେଇ ଖତ ଦେଇ
ତାକୁ ବଢ଼ାଇବା

ଜୀବନରେ କିଛି ଯଦି
ପାରିନାହଁ କରି
ଧନ୍ୟକର ଜୀବନକୁ
ଗଛଟେ ଉଭାରି ।



# ଆସିଲା ଶୀତ

ଆସଲା ଶୀତ
ବୁଢ଼ୀମା ପାଖେ
ପିଲାମାନେ ବସି
ଗାଆନ୍ତି ଗୀତ ।



ହୋଇଲେ ରାତି
ପିଲାମାନେ ସବୁ
ଆଉଜି ପଡ଼ନ୍ତି
ବୁଢ଼ୀମା' କତି ।

ତା' ଦେଖି ଅଜା
ଠୁକୁ ଠୁକୁ କରି
ବାଡ଼ି ଖଣ୍ଡେ ଧରି
କରନ୍ତି ମଜା ।



କହନ୍ତି ହସି
ଆଈପାଖେ ଅଛି
ଗପର ପେଟିକା
ଖୋଲରେ ବସି ।

ଆଈ ତା ଶୁଣି
କହି ଚାଲିଥାନ୍ତି
ଗୋଟିଏ ଗୋଟିଏ
ମଜା କାହାଣୀ ।

ଗୋଟିଏ ଆଉ
ଗୋଟିଏ ସରିଲେ
ପିଲାଏ କହନ୍ତି
କହିବା ହେଉ ।

ଉହ୍ଲେଇ ପାଖେ
ନିଆଁ ପୋଉଁ ପୋଉଁ
ଗପ ଶୁଣୁ ଶୁଣୁ
ନିଦଟି ଆସେ ।





# କୃଷକ ଭାଇ



କୃଷକ ଭାଇ          ଯାଉଛ କାହିଁ
ହଳ ଲଙ୍ଗଳ ଧରି
ଖରା ବରଷା          ସହିବ କେତେ
ଦୁଃଖ ଯାତନା ବରି ।

କଳ ଲଙ୍ଗଳ          ଆସିତ ଗଲା
କାମ ହେଲା ସଅଳ
ବିଜୁଳି ବତୀ          ଲାଗିତ ଗଲା
ସଞ୍ଜ ହେଲା ସକାଳ ।



ଧାନ ଅମଳ          ଲାଗିଲା କଳ
ଦିହ ମିହନ୍ତ ଯେତେ
ଲାଘବ ହେଲା          କହନି ଭାଇ
ଶୋଚନା କାହିଁ ଏତେ ।

ସମୟ ତୋର          ପଡ଼ିବ ବଳି
ନ ଯା ଅଳସ ପାଶ
ବାଡ଼ିରେ କର          ପନିପରିବା
ଫଳ ଫୁଲର ଚଷ ।

ପଡ଼ିଆ ଅବା ଟାଙ୍ଗରା ଜମି
ଯାହା ବା ତୋର ଥିବ
ଭଲିକି ଭଲି ଲଗାଅ ଗଛ
ସବୁଜ ଶିରି ଦେବ ।

ବନ୍ଧ ଭେଡ଼ି ରାସ୍ତା କଡ଼
ଯୋଉଠି ପାରୁ ଯେତେ
ଲଗାଇ ଯାଅ ଗଛ ବୁରୁଛ
ସାହା ହୋଇବ ତୋତେ ।



କୃଷ୍ଣଚୂଡ଼ା ରାଧାଚୂଡ଼ା ବା
କଦମ୍ବ, ଚମ୍ପା, ନିମ୍ବ
ଜାମୁ, ପଣସ ବର, ଅଶ୍ୱତ୍ଥ
ତାଳ ତମାଳ ଆମ୍ବ ।

ଆଜି ତୁ ଯଦି ଲଗାଉ ଗଛ
ଆଗାମୀ ଦିନମାନ
ହୋଇବ ସୁନା କରିବେ ପିଲେ
ତୋ'ରି ଯଶ ଗାନ ।

ଗାଁର ଶୋଭା କେଡ଼େ ସୁନ୍ଦର
ଭରିବ ଫୁଲ ଫଳ
ପାଇବୁ ଛାଇ ଖୋଲା ପବନ
ଯେତେ ଯା କାଠ ଜାଳ ।

ବଦଳି ଚାଲେ ଦୁନିଆ ଦେଖ
ଦିନକୁ ଦିନ କେତେ
ତା' ସାଥେ ପାଦ ମିଳାଇ ଦେଲେ
ଯିବା ପ୍ରଗତି ପଥେ ।



# ଆସରେ ପିଲେ

ଆସରେ ପିଲେ ଦେଖିବା ବୁଲି
ଆମରି ଗାଁ ଲୋକ
କରନ୍ତି କାମ ହସାଇ ଦେଇ
ସାରା ସଂସାର ଯାକ ।



କୃଷକ କରେ କିପରି ହଳ
ବିଲେ ପକାଇ ଖତ
ବାଛଇ ଘାସ ଉପାଡ଼େ ତଳି
ଉଠିଆ କରେ କ୍ଷେତ ।

ବୁଣେ ବିହନ ଅମଳ କରେ
ଜାତି ଜାତି ଫସଲ
ଅଧାର ଦିଏ ଜଗତ ଜନେ
କରିବ କେ ତା ମୂଲ ।



ବଢ଼େଇ ଭାଇ ଗଢ଼େ ଲଙ୍ଗଳ
ଘରର ଆସବାବ
ନିହାଣ ମୁନେ ଲେଖେ କବିତା
କେତେ ତା ଅନୁଭବ ।

କମାର ଭାଇ ଦାଆ କୋଦାଳ
ଶାବଳ ହତିଆର
ଗଢଇ ବସି ନିଆଁରେ ଧସି
କେତେ ଯେ ଦରକାର ।



କୁମ୍ଭାର ଭାଇ ଗଢ଼ଇ ଘଟ
ଘୂରାଇ ଦେଇ ଚକ
ଆଟିକା ହାଣ୍ଡି ଭଳିକି ଭଳି
ଦେଖରେ ପିଲେ ଦେଖ ।



ତନ୍ତି ବାପୁଡ଼ା ବୁଣଇ ଲୁଗା
କେତେ ଯତନ କରି
ହରେକ ରଙ୍ଗେ ରଙ୍ଗାଇ ଦେଇ
ସୂତା ଯେ ଅସୁମାରି ।

ଦିଅଇ ବାସ ଜଗତ ଜନେ
ବୁଝିକି ପାରୁ ଆମେ
ଲଜ୍ଜା ଆମ ଘୋଡ଼ାଇବାକୁ
ଲାଗିଥାଏ ସେ କାମେ ।



ଗୁଡ଼ିଆ ଘର ଲାଜେଇ ବୋହୂ
ତିଆରେ ମୁଢ଼ି ମୁଆଁ
ଲଡୁ କାକରା ଜିଲାପି ବରା
ଗୁଡ଼ିଆ ବିକେ ତାହା ।

ପେଡ଼ଇ ତେଲ ତେଲି ମଉସା
ଘଣାରେ ଘିରି ଘିରି
ଲାଗଇ ଭଲ ରାନ୍ଧଇ ବୋଉ
ବଢ଼ିଆ ତରକାରୀ ।



ବାରିକ ଭାଇ କ୍ଷିଅର କରେ
କାଟଇ ଆମ ବାଳ
ସୁନ୍ଦର ଦିଶେ ମୁହଁଟି ଆମ
ତା 'ରି ହାତ ଫଳ ।



ରଜକ ଭାଇ ସଫା କରଇ
ଆମରି ଲୁଗା ପଟା
ଧୋବ ଧାବଳା ଦିଶନ୍ତି ସର୍ବେ
ତା 'ରି ହାତ ଛଟା ।
ଏମାନେ ଆମ ପରମ ମିତ
ବନ୍ଧୁ ସଖା ଭାଇ
ସୁଖ ଦୁଃଖରେ ସାହା ଆମର
ଜୀବନ ଦିଆଦେଇ ।
ଆସିବ ଦିନ ହୋଇବା ଯେବେ
ବଡ଼ ମଣିଷ ଆମେ
ତାଙ୍କରି ପରି ହେବା ସରଳ
ଲାଗିବା ଦେଶ କାମେ ।



